# କାଠଯୋଡ଼ୀ ପଥରବନ୍ଧ ।

କଟକ, ପ୍ୟାରିମୋହନ ଏକାଡେମିର

ଶିକ୍ଷକ

ଶ୍ରୀ ରାଧାଚରଣ ମହାପାତ୍ରଙ୍କ ଦ୍ୱାରା

ପ୍ରଣୀତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।



କଟକ, ଚନ୍ଦ୍ରୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।

PRINTED BY H. K. DAS.
CHANDRODAYA PRESS,
CUTTACK.
1918.

ମୂଲ୍ୟ ଟ ୦ / ୩

# ମୁଖବନ୍ଧ ।

ଅତି ପ୍ରାଚୀନକାଳରେ ଆମ୍ଭମାନଙ୍କର ଜନ୍ମଭୂମି ଏହି ଉତ୍କଳ ଭୂଖଣ୍ଡ ମହାପରାକ୍ରମଶାଳୀ କେଶରୀବଂଶୀୟ ନରପତିମାନଙ୍କଦ୍ୱାରା ଶାସିତ ହେଉଥିଲା । ମାଦଳାପାଞ୍ଜି ବିବରଣରୁ ଜଣାଯାଏ ଯେ ଖ୍ରୀ ୪୭୪ ଷ୍ଟାବ୍ଦରୁ ଏହିବଂଶୀୟ ରାଜାମାନଙ୍କର ରାଜତ୍ୱ ଆରମ୍ଭ ହୋଇ ବ ୬୫୦ ର୍ଷବ୍ୟାପୀ ଦୀର୍ଘକାଳ ପ୍ରଚଳିତ ଥିଲା । ସେମାନଙ୍କର ରାଜ୍ୟ ଉତ୍ତରର କେତେକ କ୍ରୋଶ ଉତ୍ତରବର୍ତ୍ତୀ କାଂସବାଂସ ନଦୀଠାରୁ ଦକ୍ଷିଣରେ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ ଓ ପୂର୍ବରେ ସାଗରତୀରଠାରୁ ପଶ୍ଚିମରେ ଢେଙ୍କାନାଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ପ୍ରଦେଶର ପରିମାଣ ଫଳ ୧୧୦୦୦ ବର୍ଗମାଇଲ ଥିଲା ଓ ସମଗ୍ର ଅଧିକୃତ ରାଜ୍ୟରୁ ୧୫ ଲକ୍ଷ ମାତ୍ର ସ୍ୱର୍ଣ୍ଣ ରାଜସ୍ୱ ପ୍ରାପ୍ତ ହେଉଥିବାର ପ୍ରବାଦ ପ୍ରଚଳିତ ଅଛି । ଉକ୍ତ ବଂଶର ରାଜାମାନେ ଉଦାରଚେତା, ଦାନଶୀଳ, ଦେଶହିତ-ବ୍ରତୀ ଓ ଜ୍ଞାନୀଥିଲେ ଏବଂ ମନଃପ୍ରାଣବିନିଯୋଗପୂର୍ବକ ଯୋଗେଶ୍ୱର ଶିବଙ୍କର ଉପାସନା କରୁଥିଲେ । ସେମାନଙ୍କର ଦେଶହିତକର କାର୍ଯ୍ୟା-ବଳୀ ଆଜ ସୁଦ୍ଧା ଇତିହାସରେ ପ୍ରସିଦ୍ଧି ଲାଭ କରିଅଛି । ଉଦାହରଣ ସ୍ୱରୂପ ଉକ୍ତ ବଂଶର ରାଜା ଯଯାତିକେଶରୀ ସ୍ୱୀୟ ନାମାନୁସାରେ ଆଧୁନିକ ଯାଜପୁରକୁ "ଯଯାତିପୁର" ଆଖ୍ୟା ପ୍ରଦାନ କରି ସେଠାରେ ରାଜଧାନୀ ସ୍ଥାପନପୂର୍ବକ ପ୍ରଜାମଣ୍ଡଳୀର ଧର୍ମଭାବ ବିସ୍ତୃତିଉଦ୍ଦେଶ୍ୟରେ ଦଶାଶ୍ୱମେଧ ଘାଟ ଓ ଅନେକ ନୂତନ ଦେବମନ୍ଦିର ନିର୍ମାଣ କରାଇଲେ ଏବଂ ଯଜ୍ଞକାର୍ଯ୍ୟାନୁଷ୍ଠାନ ନିମିତ୍ତ ଉତ୍କଳରେ ଶ୍ରୋତ୍ରିୟ ବ୍ରାହ୍ମଣର ଏକାନ୍ତ ଅଭାବ ଅନୁଭବ କରି ବହୁବ୍ୟୟଭାରବହନପୂର୍ବକ କାନ୍ୟକୁବ୍ଜରୁ ଦଶ ସହସ୍ର ଉପଯୁକ୍ତ ବେଦଜ୍ଞ ବ୍ରାହ୍ମଣ ନିମନ୍ତ୍ରଣ କରି

ଅଣାଇ ଯଜ୍ଞକାର୍ଯ୍ୟସମାପ୍ତିପରେ ଏ ଦେଶରେ ଚିରକାଳ ବସତି ସ୍ଥାପନ କରି ରହିବା ନିମିତ୍ତ ସେମାନଙ୍କ ପାଇଁ ଯଥେଷ୍ଟ ବୃତ୍ତି ନିର୍ଦ୍ଧାରଣ କରିଦେଲେ । ଯଶଃକାମୀ ଲଲାଟେନ୍ଦୁ କେଶରୀ ମଧ୍ୟ ଖ୍ରୀ୬୬୭ ଅବ୍ଦରେ ଅପରିମିତ ଅର୍ଥବ୍ୟୟ ସ୍ୱୀକାର କରି ସୁନ୍ଦର ସୂଚୀକର୍ମବିମଣ୍ଡିତ ଭୁବନ-ବିଖ୍ୟାତ ଭୁବନେଶ୍ୱରମନ୍ଦିର ଓ ଅନ୍ୟାନ୍ୟ ଅସଂଖ୍ୟ ଶିବାଳୟ ନିର୍ମାଣ ଓ ବିନ୍ଦୁସରୋବର ନାମକ ଏକ ପ୍ରକାଣ୍ଡ ପୁଷ୍କରିଣୀ ଖନନ କରାଇ ଅଦ୍ୟ ଏକା ଉତ୍କଳଖଣ୍ଡ କାହିଁକି ସମଗ୍ର ଭାରତବର୍ଷ ଓ ପୃଥିବୀର ସମସ୍ତ ସୁସଭ୍ୟ ରାଜ୍ୟମାନଙ୍କରେ ପ୍ରାତଃସ୍ମରଣୀୟ ହୋଇଅଛନ୍ତି । ଯେଉଁ କଟକନଗର ଅଧୁନା ଉତ୍କଳରାଜ୍ୟର ରାଜଧାନୀ ଓ ଶିଳ୍ପ-ବାଣିଜ୍ୟାଦି ବିବିଧ ବିଦ୍ୟାଚର୍ଚ୍ଚାର କେନ୍ଦ୍ରସ୍ଥଳୀ ହୋଇ ସ୍ୱଦେଶ ଓ ବିଦେଶରୁ ପାଠକବୃନ୍ଦଙ୍କୁ ଆକର୍ଷଣ କରି ଆଣୁଅଛି, ତାହା ଏହି କେଶରୀବଂଶୀୟ ଗୁଣୀ ଓ ସମରପ୍ରିୟ ନରପତି ନୃପକେଶରୀଙ୍କ ଦ୍ୱାରା ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ନିରାପଦ ଅବସ୍ଥିତି ନିମିତ୍ତ ଦଶମଶତାବ୍ଦୀରେ ମହାରାଜଙ୍କ ଆବାସସ୍ଥାନରୂପେ ସଂସ୍ଥାପିତ ହୋଇଥିଲା । ଉକ୍ତ ନଗରଟି ମହାନଦୀ ଓ କାଠଯୋଡ଼ି ଏହି ନଦୀଦ୍ୱୟ ପରିବେଷ୍ଟିତ ହୋଇ ଦ୍ୱୀପ-ଖଣ୍ଡାକାର ଧାରଣ କରିଅଛି; ଏଣେ ପୁଣି ନଗରର ତଳଭାଗ ପୂର୍ବୋକ୍ତ ନଦୀଦ୍ୱୟ ସମତଳ ଅପେକ୍ଷା ବହୁପରିମାଣରେ ନ୍ୟୂନତର; ଫଳତଃ ନଦୀବନ୍ୟା ସାଧାରଣ ପରିମାଣଠାରୁ ଟିକିଏ ଅଧିକ ହେଲେ ବନ୍ୟା-ଜଳ ନଗରମଧ୍ୟରେ ପ୍ରବେଶ କରି ଛାରଖାର କରିଦେବ, ପୁନଶ୍ଚ ନଗରଟି ନଦୀପରିବେଷ୍ଟିତ ଥିଲେ ମଧ୍ୟ ତାହାର ଗୃହଅଙ୍ଗେ କୌଣସି ସୁଦୃଢ଼ ପ୍ରସ୍ତରପ୍ରାଚୀର କିମ୍ବା ସେତୁ ନ ଥିବାରୁ ତାହା ବାହ୍ୟଶତ୍ରୁ-ମାନଙ୍କଦ୍ୱାରା ଆକ୍ରାନ୍ତ ହୋଇ ଅବାଧରେ ସେମାନଙ୍କ କବଳକବଳିତ

ହେବ; ସମ୍ଭବତଃ ଏହି ବିଷୟ ଗୁଡିକ ନୃପକେଶରୀ ଭାବି ସ୍ଥିରକରି ପାରି ନ ଥିଲେ ଏବଂ ସେହି ହେତୁରୁ ଏଥିର କୌଣସି ପ୍ରତିବିଧାନ କରାଯାଇ ନ ଥିଲା । ଦୂରଦର୍ଶୀ ନୃପତି ମର୍କତକେଶରୀ ସିଂହାସନା– ରୋହଣର କିଯତ୍‌କାଳପରେ ଏହି ଗୁରୁତର ଅଭାବଟି ଲକ୍ଷ୍ୟକରି ତାହାର ପ୍ରତିବିଧାନରେ ମନଃପ୍ରାଣ ଅଭିନିବେଶ କରିଥିଲେ; ତଦନନ୍ତର ଖ୍ରୀ ୯୮୯ ଷ୍ଟାବ୍ଦଠାରୁ ଖ୍ରୀ ୧୦୨୪ଷ୍ଟାବ୍ଦ ମଧ୍ୟରେ ତାଙ୍କର ଭାବନା କାର୍ଯ୍ୟରେ ପରିଣତ ହେଲା ଅର୍ଥାତ୍ ରାଜକୋଷରୁ ଅକାତରେ ଅପରିମିତ ଅର୍ଥ ବ୍ୟୟିତ ହୋଇ ସୁଦକ୍ଷ ଶିଳ୍ପକଳାବିତ୍ ଲୋକମାନଙ୍କ ତତ୍ତ୍ୱାବଧାନରେ ଉଭୟ ନଦୀ ( କାଠଯୋଡ଼ୀ ଓ ମହାନଦୀ ) କୂଳେ କୂଳେ ସୁଦୃଢ଼ ଉନ୍ନତ ପାଷାଣସେତୁମାନ ନିର୍ମିତ ହେଲା । ସେହି ସମୟରୁ କଟକନଗର ବନ୍ୟାକବଳରୁ ସୁରକ୍ଷିତ ହୋଇ ଆସୁଅଛି ଏବଂ ସେଗୁଡ଼ିକ ଆଜ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ବିଦ୍ୟମାନ ରହି ମହାମନା ନୃପତି- ଶିରୋମଣିଙ୍କର ଯଶୋଗୀତି ଗାନ କରୁଅଛି; ଅବ ସୁଦ୍ଧା ଉକ୍ତ ଶିଳା– ସେତୁଗୁଡ଼ିକ ଉତ୍କଳର ପ୍ରାଚୀନ କୀର୍ତ୍ତିପୁଞ୍ଜ ମଧ୍ୟରେ ପରିଗଣିତ ହେଉଅଛି ଓ ସେମାନଙ୍କର ପ୍ରତିଷ୍ଠା ନିମିତ୍ତ ମର୍କତକେଶରୀ ଇତିହାସରେ ସମୁନ୍ନତ ସ୍ଥାନ ଲାଭ କରୁଅଛନ୍ତି । ଧନ୍ୟ ମର୍କତକେଶରୀ ! ତୁମ୍ଭର ଏହି ଅଲୌକିକ ଅନୁଷ୍ଠାନ ଯୋଗୁଁ ଆଜ ଉତ୍କଳଜନନୀ ସୁସଭ୍ୟ- ଜନସମାଜପରିପୂଜନୀୟା ହୋଇଅଛି ।

ହେ ସୁଧୀ ପାଠକବର୍ଗ ! ଏହି ଐତିହାସିକ ଗଳ୍ପକୁ ଲକ୍ଷ୍ୟକରି ଏ କ୍ଷୁଦ୍ର ପୁସ୍ତିକାଟି ରଚିତ ହୋଇଅଛି, ସାଦରେ ଓ ସାଗ୍ରହରେ ଗୃହୀତ ଓ ପଠିତ ହେଲେ ପରିଶ୍ରମ ସଫଳ ମନେ କରିବି । ଇତି ।

ପ୍ରଣେତା

# ପାଠକବର୍ଗଙ୍କୁ ନିବେଦନ ।

କାଠଯୋଡ଼ୀବନ୍ଧେ  ବସି ହେ ପାଠକେ !
ଭାବଛ କି କେବେ ଥରେ ?
ଏ ପାଷାଣ ସେତୁ  କଟକ ବାସିଙ୍କ
କିସ ଉପକାର କରେ ।
ନ ଥିଲେ ଏ ବନ୍ଧ  ନଦୀବନ୍ୟାଜଳ
କେତେବାଳୁଁ ଏ ସହର
ଭସାଇ ନେଇଣ  ନର-ଘରଦ୍ୱାର
କରିଥାନ୍ତା ଛାରଖାର ।
ଯେ ମହାପୁରୁଷ  ଏ ଅମର ସେତୁ
କରାଇଛନ୍ତି ନିର୍ମ୍ମାଣ
ଧନ୍ୟ ତାଙ୍କୁ ଆଜି  ବୋଲୁଛନ୍ତି ଲୋକେ
ଅଟନ୍ତି ସେ କୀର୍ତ୍ତିମାନ ।
"କୀର୍ତ୍ତିମାନ ନର  ଚିରଜୀବୀ ହବେ"
ଅଟେ ଏ କବିବଚନ,
"ନଶ୍ୱର ଶରୀର -  ତେଜିଣ କୀରତି—
କ୍ଷିତିରେ ସେ ବପୁଷ୍ମାନ" ।
କେଶରୀ ବଂଶରେ  ଜନମ ତାଙ୍କର
ନାମ "ମର୍କତକେଶରୀ",
ଶିଳାସେତୁ ଦର—  ଶନେ ତାଙ୍କ ଯଶେ
ଜନହୃଦ ଯାଏ ପୂରି ।
ସେହୁ ମହାମନା  ନୃପତିଙ୍କି ଭକ୍ତି—
ପୁଷ୍ପାଞ୍ଜଳି କରି ଦାନ
ତାଙ୍କ ସୁନିର୍ମଳ  ଯଶୋ-ଗୀତି ଗାଇ
କର ବିନମ୍ରେ ପ୍ରଣାମ ।

ପ୍ରଣେତା ।

# କାଠଯୋଡ଼ୀ ପଥରବନ୍ଧ ।

ରାଗ—ବଙ୍ଗଳାଶ୍ରୀ ।

ଧ ରକ୍ଷାପଦସ୍ପୃ  ଗଲ୍ଲଣି ତ ଗୃଲ୍ଲ
ଘନ (୧) ବର୍ଷେ ଘନ ଘନ
ଶୋଭାପଦପୂର୍ଣ୍ଣ  ଶରଦରାଜ୍ୟରେ
ଏ କି ଅବା ଅଘଟନ ?
ଶଇଳ (୨) ଶିଖରେ  ମୂଷଳଧାରରେ
ଢାଳନ୍ତି ବାରଦ (୩) ଜଳ ;
ପର୍ବତନନ୍ଦିନୀ  ତରଙ୍ଗିଣୀ କୁଳ
ହୋଇଲେ ବନ୍ୟାପ୍ରବଳ ।
କ୍ଷୁଦ୍ର ନଦୀମାନେ  ଜଳ-ବଳ-ଗର୍ବେ
କଲେ କୂଳ ଉଲ୍ଲଙ୍ଘନ;
ବଡ଼ ନଦୀଗଣ  ଭୀଷଣ ତରଙ୍ଗ
ଖେଳାଇ କଲେ ଗର୍ଜ୍ଜନ ।
କାଠଯୋଡ଼ୀ ନଦୀ  ଅକ କୂଳ ଲଙ୍ଘି
ଦେଖାଇ ଭୀମମୂରତି
ପଥର ବନ୍ଧରେ  ତେଜରାଶି ପିଟି
ଯାଉଛି ବନ୍ଧୁ ଫୁଟେଇ ।

---

(୧) ମେଘ (୨) ପର୍ବତ (୩) ମେଘ ।

କେତେ କର୍ମ୍ମଗୃହ　　ବିଦ୍ୟାଳୟ ଘର
ଦଳବାନ୍ଧି ଅଛି ବନ୍ଧେ,
ନଦୀଜଳେ ଗୃହିଁ　　କ୍ଷଣେ କ୍ଷଣେ ରହି
ଜଳଯନ୍ତ୍ର (୪) ମହାନନ୍ଦେ ।
ପ୍ରତିମୁହୂର୍ତ୍ତରେ　　କେତେ ଯେ ଲହରୀ
ପିଟୁଅଛି ତହିଁ ମଥା
ଦେଖିଲେ ନୟନେ　　ଭାବୁକ ମନରେ
ଫୁଟିଯାଏ କେତେ କଥା ।
କିନ୍ତୁ ସେ ପଥର—　　ବନ୍ଧ ମାଡ଼ଖାଇ
ରହିଛି ଦୃଢ଼ ଅଟଳ,
ଏହିପରି କେତେ—　　କାଳ ତ ଗଲାଣି
ଯିବ ପୁଣି କେତେ କାଳ ।
"କଟକ ସହର—　　ତିନିଭାଗ ନିମ୍ନ—
ତର ନଦୀସମତଳୁଁ,
ନଦୀବନ୍ଧ ସିନା　　ରଖିଛି ସହର
ପ୍ରବଳ ବନ୍ୟାକବଳୁଁ ।
ନୋହିଲେ ତ ନଦୀ　　ଅଳପ ବଢ଼ିଲେ
ସହର ଯାଆନ୍ତା ଭାସି
କାହୁଁ ଏଡ଼େ ସୁଖ—　　ଶାନ୍ତିରେ ଥାଆନ୍ତେ
କଟକନଗରବାସୀ" ।
ଏହିପରି ଦୁଇ　　ପ୍ରବୀଣ ଯୁବକ

---

[୪] ଗଳ୍ପ କରନ୍ତି ।

କରୁଥିଲେ ଆଳାପନ (୫)
ସେହି ବନ୍ଧ ପାଶେ ଯାଉଥିଲେ ଗୃହ
ଶିଶୁଛାତ୍ର କେତେ ଜଣ ।
ସେହି ଛାତ୍ରଦଳଙ୍କୁ ଗୋଟିଏ ବାଳକ
ଇଙ୍ଗିତରେ ଦେଲା କହି
"ଅହେ ଭାଇମାନେ ! ପଥର ବନ୍ଧର
ଗଳ୍ପ ଶୁଣ ଟିକେ ରହି" ।
ଜାଣିପାରି ତାହା ଯୁବକ ଭାଷିଲା
"ଆସ ହେ ବାଳକଗଣ !
ଯାହା ଜାଣିବାକୁ ବଳାଇଛ ମନ
ତାହା ମୁଁ କହୁଛି ଶୁଣ ।
କିଏ ସେ ଏ ବନ୍ଧ କରିଛି ନିର୍ମାଣ
ଆଗେ ସେହିକଥା ଭାଇ !
ତୁମ୍ଭମାନଙ୍କୁ ମୁଁ ଅତି ସଂକ୍ଷେପରେ
କହିବି ଏବେ ବୁଝାଇ ।
ଅତି ପୂର୍ବକାଳେ ଏ ପୁଣ୍ୟ ଉତ୍କଳେ
(୬) "କେଶରୀ" ଏହି ନାମରେ,
ଥିଲା ଏକବଂଶ ବଳୀ ନୃପଶ୍ରେଣୀ
ଶୋଭୁଥିଲେ ଯା କୋଳରେ ।
ଥିଲେ ସେହିବଂଶେ ଲଲାଟେନ୍ଦୁ ନାମେ
ଏକଗୁଣୀ ନରପତି

[୫] କଥାବାର୍ତ୍ତା [୬] କେଶରୀ ବଂଶୀୟରାଜାମାନେ ଖ୍ରୀ: ୪୭୪ ଠାରୁ ଖ୍ରୀ: ୧୧୨୪ ପର୍ଯ୍ୟନ୍ତ ଉତ୍କଳରେ ରାଜତ୍ୱ କରୁଥିଲେ ।

ଏକାମ୍ରକାନନେ (୭)   ତୋଳାଇ ମନ୍ଦିର
ରଖିଲେ ଯେ ସ୍ଥାୟୀ କୀର୍ତ୍ତି ।
ଯଯାତି କେଶରୀ   ନାମ ବଜ୍ରନାଦେ
ଘୋଷୁଛୁ "ଯଯାତି ପୁର" (୮) ।
ସୁଖ୍ୟାତି-ସମ୍ପଦେ   ହୋଇଥିବେ ଅଜ
ଦେବଲୋକେ ମହାସୁର ।
ସେହିବଂଶ ରଜା   ନୃପତି କେଶରୀ
କେଉଁ ଶୁଭ ମୁହୂର୍ତ୍ତରେ
"କଟକ ନଗର"   ବସାଇ ରଖିଲେ
ଅମର କୀର୍ତ୍ତି ଉଜ୍ଜ୍ୱଳେ ।
ଅଜ ସେ କଟକ   ରାଜଧାନୀ ରୂପେ
ଦେଖାଏ କେତେ ଛଟକ,
ବିପଣି-(୯)ବୀଥିକା-   ସଉଧ ସମାଜେ
ଦିଶୁଅଛି ଜକ ଜକ ।
ଅଜ ଏ ନଗରଂ   ନାଗରିକ ଦନ୍ତୁଁ
କେହି କେବେ ସ୍ୱପନରେ ।
"ନୃପତି କେଶରୀ"   ପ୍ରତିଷ୍ଠାତା ନାମ
ଭବିଥାନ୍ତ କହେ ଥରେ ?
ଦୂରଦର୍ଶୀ ନୃପ   ମର୍କତ କେଶରୀ
ମଣ୍ଡିଥିଲେ ସେହି କୁଳ (୧୦),
ତାଙ୍କର ସୁଦକ୍ଷ   ଶାସନ ପ୍ରଣାଳୀ

(୭) ଭୁବନେଶ୍ୱରଠାରେ (୮) ଯଯାତିକେଶରୀ ଏହି ନଗରକୁ ବସାଇ ନିଜ ନାମାନୁସାରେ ଏହାର ନାମ "ଯଯାତିପୁର" ରଖିଥିଲେ (୯) ବଜାର (୧୦) ବଂଶ ।

ଶୋଭିଥିଲୁ ପ୍ରଜାକୁଳ [୧୧] ।
ସନ୍ତତିଁ ରକ୍ଷଣ, ପରଜା ରଞ୍ଜନ
ଯେଣୁ ଥିଲା ତାଙ୍କ ବ୍ରତ,
ବନ୍ୟାକବଳରୁ ରକ୍ଷିବେ କଟକ
ବୋଲି ବଳାଇଲେ ଚିତ୍ତ ।
ଅପ୍ରମିତ ଅର୍ଥ ରାଜ ଭଣ୍ଡାରରୁ
କରି ବ୍ୟୟ ଅକାତରେ,
ଅସଂଖ୍ୟ ସୁଦକ୍ଷ— ଶିଳ୍ପିଶ୍ରମଜୀବୀ [୧୨]
ଲଗାଇ ତହିଁ ଅଚିରେ ।
ଆରମ୍ଭିଲେ ନୃପ ଏହି ଦୃଢ଼ତମ
ପଥରବନ୍ଧର କର୍ମ୍ମ,
ଦୀର୍ଘକାଳ ଅନ୍ତେ ବିଭୁକୃପାବଳେ
ହେଲା ତା ଶୁଭେ ସମ୍ପନ୍ନ ।
କାଳ-ପର୍ବାରେ ଆଠଶ ବରଷ
ଗଲାଣି ତା ପରେ ଭସି,
ସେ ପଥରବନ୍ଧ ରଖିଛି ଅକ୍ଷୁଣ୍ଣ
ମହୀପତିଯଶୋରାଶି ।
କେତେ କେତେ ରାଜା କଲେଣି ଏଥିରେ
କେତେ ବା ଜୀର୍ଣ୍ଣସଂସ୍କାର [୧୩],
ତଥାପି ପ୍ରଧାନ— ବନ୍ଧ ଆଜଯାଏ
ରହିଛି ଶକ୍ତ ଅଟଳ ।

---

(୧୧) ପ୍ରଜାସମୂହ (୧୨) ରାଜମିସ୍ତ୍ରି ଓ ମଲିଆ (୧୩) ମରାମତି କାର୍ଯ୍ୟ ।

ବ୍ରିଟିଶ-କେଶରୀ ସୁଶାସନେ ଏଥି
ହେଲା ପାଷାଣ ଯୋଜିତ,
ମାକଡ଼ା ଶିଳାରେ ଚୂନ ଲିପା ହୋଇ
ଦଶନ୍ତି କେଡ଼େ ଶୋଭିତ ।
ସେ କାଳେ କଟକ— ଜିଲ୍ଲା-ଅଧିପତି
ମହାମୂଲ୍ୟ ସିଂହାସନ,
ସୁଯୋଗ୍ୟ ଦୟାଳୁ କର୍ଣ୍ଣଲ ବାର୍ଥୁଡ଼ (୧୪)
କରିଥିଲେ ବିମଣ୍ଡନ ।
ସେହି ସିଂହାସନ ବାର୍ଥଉଡ଼ ସମ
ଗୁଣୀ ରାଜପ୍ରତିନିଧି—
କୋଳେ ଧରି ସ୍ନେହେ ହୋଇଥିଲା ଧନ୍ୟ,
ରଙ୍କ ପାଇ ଯଥା ନିଧି ।
ପ୍ରଜାଙ୍କ ଗୁହାରି ଶୁଣିବାକୁ ସେତ
ଡେରିଥିଲେ ସଦା କାନ,
ଦେଶ ଉପକାର କରିବାକୁ ଚାଲି—
ଦେଇଥିଲେ ମନପ୍ରାଣ ।
କଟକ ଜିଲ୍ଲାର ଉନ୍ନତିସାଧନ
ବ୍ରତଥିଲା ତାଙ୍କ ଯେଣୁ,
କାଠଯୋଡ଼ୀବନ୍ଧ- ଶିଳାସଂଯୋଜନ-
କାର୍ଯ୍ୟ ରଖିଗଲେ ତେଣୁ ।
ମର୍କତକେଶରୀ ନାମ ସଙ୍ଗେ ସଙ୍ଗେ

(୧୪) ସୁଯୋଗ୍ୟ ଶ୍ରୀଯୁକ୍ତ ବାର୍ଥଉଡ଼ ସାହେବ ମହୋଦୟ ଅଳ୍ପଦିନ ପୂର୍ବେ କଟକ ଜିଲ୍ଲାର ମାଜିଷ୍ଟ୍ରେଟ ପଦରେ ଅଧିଷ୍ଠିତ ଥିଲେ ।

ବ୍ରିଟିଶ-କେଶରୀ [୧୫] ନାମ
ତହୁଁ ସଙ୍ଗେ ସ୍ମରି କର ହେ ବାଳକେ !
ତାଙ୍କ ଯଶୋ-ଗୀତ ଗାନ ।
ସୁଝିବାକୁ ତାଙ୍କ ଉପକାର-ଋଣ
ନାହିଁ ଭବେ ଯୋଗ୍ୟ ଧନ,
ତେଣୁ ହେ ସରବେ ହୃଦ କୃତଜ୍ଞତା
କର ସଦା ଅରପଣ ।
ଏ ଦୀନ ମିନତି ପ୍ରଶାନ୍ତ ହୃଦୟେ
ଘେନବେ ସେ ଗୁଣିବର,
ଉଦାରତା ଗୁଣେ କ୍ଷମିବେ ନିଶ୍ଚୟ
ପ୍ରଜାଙ୍କ ଦୋଷନିକର ।
ମର୍ତ୍ତ୍ୟକେଶରୀ ନୃପ କେତେକାହୁଁ
ଗଲେଣି କାହୁଁ ଉଭେଇ,
ପଥର ବନ୍ଧର— ଚିର ତାଙ୍କ ସ୍ମୃତି-
ପେଟିକା (୧୬) ହୋଇଛି ପେଇ ।
କରି ଯାଇଛନ୍ତି ବୋଲି ସିନା ସେହି
ଏଡ଼େ ସୁବିଖ୍ୟାତ କର୍ମ୍ମ,
ପ୍ରତି ମୁହୂର୍ତ୍ତରେ ଉତ୍କଳବାସିଙ୍କ
ସ୍ମୃତିରେ ପାଇଲେ ସ୍ଥାନ ।
ହେ ବାଳକେ ! ଯେବେ ବାଞ୍ଛିଥାଅ ଚିତ୍ତେ
ହେବାକୁ ଭବେ ଅମର,

(୧୫) ବ୍ରିଟିଶ-ସିଂହ ବା ପ୍ରବଳ ପରାକ୍ରମୀ ବ୍ରିଟିଶ ରାଜ (୧୬) ପେଡ଼ି ।

ଲୋକଙ୍କ ଭକର ପବନ୍ଧ କର୍ମରେ
ଦାଅ ମନ ନିରନ୍ତର ।
ତମୋମନ୍ତ୍ର (୧୬) ଭବେ ପୁଣ୍ୟକର୍ମ-ଦୀପ
ଦଶଇ ସିନା ଉଜ୍ଜ୍ୱଳ ।
ସେହି ଦୀପଶିଖା ଅନୁସାର ଯାନ୍ତି
ଏ ସଂସାରଯାବି ଦଳ ।

(୧୬) ଅନ୍ଧକାର ଯୁକ୍ତ ।

ସମାପ୍ତ ।



Printed by H. K. Das. Chandrodaya Press Cuttack.

# ବିଜ୍ଞାପନ ।



ଶ୍ରୀ ରାଧାଚରଣ ମହାପାତ୍ରଙ୍କ କୃତ ନିମ୍ନଲିଖିତ କବିତା ପୁସ୍ତକଗୁଡ଼ିକ ତଳେ ଲିଖିତ ସ୍ଥାନମାନଙ୍କରେ ତଡ଼ୁକଲେ ପାଇପାରିବେ । ପୁସ୍ତକଗୁଡ଼ିକ ସରଳ ଓ ସୁନ୍ଦର ଭାଷାରେ ଲିଖିତ ଓ ବିଖ୍ୟାତ ସାହିତ୍ୟସେବକମାନଙ୍କ ସୁପ୍ରଶଂସିତ ।

କୁମାରସଙ୍ଗୀତ-ଲହରୀ (ସରଳଭାଷାରେ ଲିଖିତ କାବ୍ୟ) ଟ ୦ / ୩

ପୃଥ୍ୱୀରାଜ-ଚରିତ (ଐତିହାସିକ ଗଳ୍ପ) ଟ ୦ ୧ ୯

କାଠଯୋଡ଼ୀ ପଥରବନ୍ଧ ( „ ) ଟ ୦ / ୩

ପ୍ରାପ୍ତିସ୍ଥାନ—୧ । ଉତ୍କଳୋଦୟ ପୁସ୍ତକାଳୟ, ବାଲୁବଜାର, କଟକ ।

୨ । ଟ୍ରେଡିଂକମ୍ପାନୀ, ବାଲୁବଜାର, କଟକ ।

୩ । ଗୌରାଙ୍ଗଙ୍କର ପୁସ୍ତକାଳୟ, କଟକ ।

୪ । ରାଧାକୃଷ୍ଣ ବସୁ, ମାଣିକଘୋଷବଜାର, କଟକ ।